ISSN: 2456-9194, Vol. II, Issue. III, Dec. 2018

# ପ୍ରତ୍ୟୟ

**(Journal of Odia Language, Culture and Science)**

JournalHomepage:http://cphfs.in/research.php



# ବାଥୁଡି : ସମାଜ ଓ ସଂସ୍କୃତି

**ଡ଼ ରାଜା କୁମାର ନାଏକ**

**ଆସିଷ୍ଟାଣ୍ଟ ପ୍ରଫେସର, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ**

**ରେଭେନ୍ସା ବିଶ୍ୱବିଦ୍ୟାଳୟ,କଟକ**

E-mail: rajakumar.naik@gmail.com

***ସଂକ୍ଷିପ୍ତ ପରିଚୟ:*** *ବାଥୁଡିମାନେ ମୁଖ୍ୟତଃ ମୟୂରଭଞ୍ଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲର ନୀଳଗିରି ଅଞ୍ଚଳରେ ବାସକରନ୍ତି । ସମଗୋତ୍ର ଥିଲେ ବାଥୁଡି ସଂପ୍ରଦାୟରେ ବିବାହ ହୁଏ ନାହିଁ । ବାଥୁଡି ସଂପ୍ରଦାୟର ରୀତିନୀତି ଅନୁସାରେ ବିବାହରେ ଗନ୍ଧା ଦିଆଯାଏ । ଶିନିବାର ଦିନ ବଡାମ ପୂଜା ସମୟରେ ବାଥୁଡି ସଂପ୍ରଦାୟର ପୁରୁଷମାନେ ଧଳା ଧୋତି,ଧଳାଗଞ୍ଜି ଓ ନାରୀମାନେ ଧଳା ଶାଢୀ ବ୍ୟବହାର କରିଥାନ୍ତି । ବାଥୁଡି ସଂପ୍ରଦାୟର ଢାଙ୍ଗୁଆ ଢାଙ୍ଗୁଳିଙ୍କ ପ୍ରାଣର ଗୀତ ଦର୍ଶକଙ୍କୁ ସରସ ଓ ରୁଚିପୂର୍ଣ୍ଣ କରିଥାଏ । ବାଥୁଡି ଜାତିର ଲୋକମାନଙ୍କୁ ବର୍ତ୍ତମାନ ସହ ତାଳ ଦେଇ ବଞ୍ଚିବାକୁ ହେଲେ ଶିକ୍ଷା,ସ୍ୱାସ୍ଥ୍ୟ, ସଚେତନତା ଓ ଆତ୍ମନିର୍ଭରଶୀଳତା ଉପରେ ବିଶେଷ ଧ୍ୟାନ ଦେବାକୁ ପଡିବ ।*

*ପ୍ରମୁଖ ଶବ୍ଦାବଳୀ: ବାଥୁଡି, ବିବାହ, ଢାଙ୍ଗୁଆ ଢାଙ୍ଗୁଳି, ବଡାମ ପୂଜା, ସମଗୋତ୍ର*

## I. ଉପକ୍ରମ:

ଲୋକ ସାହିତ୍ୟ ମାନବ ସଭ୍ୟତାର ସାମୂହିକ ପରିପ୍ରକାଶ । ଏହା ଲିଖିତ ସାହିତ୍ୟର ଜନନୀ । ଏହା କୋଟି ହୃଦୟର ଅନାବିଳ ପ୍ରକାଶ । ଲେଖକୀୟ ସତ୍ତାର ନା ନାହିଁ, ଅର୍ଥଚ ସାହିତ୍ୟ,ଯେ ଲୋକଙ୍କର ହୃଦୟରେ ଓ ସ୍ମୃତିରେ ବଂଚି ରହିଥାଏ । ଲୋକସାହିତ୍ୟ ସଂପର୍କରେ ଏହି କଥା ପ୍ରଯୁଜ୍ୟ । ବିଦଗ୍ଧ ସାହିତ୍ୟ ବ୍ୟକ୍ତିମନର ସୃଷ୍ଟି ହେଲେ ହେଁ, ଏହାର ଭିତ୍ତିଭୂମି ହେଉଛି ଲୋକ ସାହିତ୍ୟ । ଏହା ଧର୍ମ, ସ୍ଥାନ, କାଳ ପାତ୍ରର ଉର୍ଦ୍ଧରେ ଲୋକଙ୍କ ଆଚରଣ ରୂପେ ଚିରକାଳ ସାମାଜିକ ପରିବର୍ତ୍ତନ ସହିତ ତାଳଦେଇ ଗତିଶୀଳ । ସଂସ୍କୃତିର ଆଶ୍ରୟ ସ୍ଥଳ ହେଉଛି ପଲ୍ଲୀ । ଓଡ଼ିଶା ପରି ଏକ ପଲ୍ଲୀ ପ୍ରଧାନ ପ୍ରଦେଶରେ ଲୋକସାହିତ୍ୟର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ଭୂମି, କେତେ ଗଭୀର ତାହା ଆମେ ଓଡ଼ିଶା ପ୍ରଦେଶର ଗାଁ ଗଣ୍ଡାର ନିରକ୍ଷର ଲୋକଙ୍କ ଚଳଣି ପ୍ରଥା ଓ ପରଂପରା ତଥା ମୌଖିକ କଳା ଦେଖି ଅନୁଭବ କରିପାରିବା । ଏହା ଧର୍ମ,ବିଶ୍ୱାସ ସଂସ୍କୃତିର ଶାଶ୍ୱତ ମୂଲ୍ୟବୋଧ ଓ ସାମୂହିକ ସ୍ଥିତିକୁ ଧରି ରଖିଥାଏ । ପାରଂପାରିକ ସମାଜରେ ଏହାର ଶିକ୍ଷାଗତ ମୂଲ୍ୟ ରହିଛି । ଯଦି ଆମେ ଚନ୍ତାକରିବା ସଂସ୍କୃତି ଟି କଣ ? ଏହା ମୁଖ୍ୟତଃ ଲୋକମାନଙ୍କର "କଥାଭାଷା" ଓ ତାରି ଜରିଆରେ ପରସ୍ପର ସହିତ ସହଯୋଗ ବା ଅସହଯୋଗର ରୂପାନ୍ତରୀକରଣ ।

ଆଦିବାସୀର ଆଦିଭୂମି ଭାରତ । ଭାରତ ଏକ ଆଦିବାସୀ ବହୁଳ ଦେଶ । ଭାରତର ରାଜ୍ୟମାନଙ୍କ ମଧ୍ୟରେ ଆଦିବାସୀ ଜନସଂଖ୍ୟା ଅନୁଯାୟୀ ଓଡ଼ିଶାର ସ୍ଥାନ ଦ୍ୱିତୀୟ । ଓଡ଼ିଶାରେ ବାଷଠି ପ୍ରକାରର ଆଦିବାସୀ ସଂପ୍ରଦାୟ ଲୋକ ବସବାସ କରନ୍ତି। ସମଗ୍ର ଓଡ଼ିଶାର ଲୋକସଂଖ୍ୟା ତୁଳନାରେ ଏମାନଙ୍କ ସଂଖ୍ୟା ଶତକଡ଼ା ୨୨ ଭାଗ । 'ଆଦିବାସୀ' ବା 'ଉପଜାତିର ଜନସମାଜ' କହିଲେ ଆମେ ସାଧାରଣତଃ ଯେଉଁମାନଙ୍କୁ ଜାଣୁ ସେମାନେ ଭାରତରେ ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର ଆଗମନର ହଜାର ହଜାର ବର୍ଷ ପୂର୍ବରୁ ବିଭିନ୍ନ ଅଞ୍ଚଳରେ ବସତି ସ୍ଥାପନ କରି ରହିଥିଲେ, ତାର କୌଣସି ସମୟସୀମା ଏ ପର୍ଯ୍ୟନ୍ତ ନିର୍ଦ୍ଧାରଣ କରାଯାଇ ନାହିଁ । ଠିକ୍ ସେହିପରି ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ କେଉଁ ଆବାହମାନ କାଳରୁ ରହି ଆସୁଛନ୍ତି,ତାହା ମଧ୍ୟ କହିବା କଷ୍ଟକର । ଭାଷାବିତ୍‌ମାନେ ଏହି ଆଦିମ ଅଧିବାସୀଙ୍କୁ ଅଷ୍ଟ୍ରିକ୍, ମୁଣ୍ଡା ବା କୋଲ୍ଲ ଗୋଷ୍ଠୀ ବୋଲି କହିଥାନ୍ତି। ଏବେ ମଧ୍ୟ ଏହି ଗୋଷ୍ଠୀର ନରନାରୀ ସଭ୍ୟଜଗତରୁ ବିଚ୍ଛିନ୍ନ ଏବଂ ପୃଥକ ହୋଇ ଏକ ଭିନ୍ନ ପୃଥିବୀର ବାସିନ୍ଦା ଭାବରେ ଘନ ଅରଣ୍ୟ ଏବଂ ଦୁର୍ଗମ ପାହାଡ଼ ପର୍ବତ ଖୋଲରେ ବସବାସ କରନ୍ତି। ସେମାନେ ପ୍ରକୃତିର ସନ୍ତାନ । ନିଜର ଐତିହ୍ୟପୂର୍ଣ୍ଣ, ରୀତିନୀତି, ଚାଲି ଚଳଣି, ସଂସ୍କାର, ଧର୍ମବିଶ୍ୱାସ ଧରି ସେମାନେ ପ୍ରକୃତି କୋଳରେ

ଜନ୍ମହୋଇ ତାରି କୋଳରେ ହସନ୍ତି, କାନ୍ଦନ୍ତି, ଜୀବନ ବିତାନ୍ତି ଏବଂ ଶୃଙ୍ଖଳିତ, ସୁନ୍ଦର ସମାଜରେ ନିଜର ସ୍ୱକୀୟ ସଂସ୍କୃତି ଓ ପରଂପରାକୁ ଧରି ରଖି ଏମାନେ ବଞ୍ଚି ରହିଛନ୍ତି ।

ଓଡ଼ିଶାରେ ବସବାସକରୁଥିବା ୬୨ ପ୍ରକାର ଆଦିବାସୀମାନଙ୍କ ମଧ୍ୟରୁ ବାଥୁଡ଼ି ହେଉଛନ୍ତି ଅନ୍ୟତମ ବୃହତ୍ତମ ସଂପ୍ରଦାୟ । ୧୯୯୧ ଜନଗଣନା ଅନୁସାରେ ବାଥୁଡ଼ିମାନଙ୍କର ସଂଖ୍ୟା ହେଉଛି ପ୍ରାୟ ଏକଲକ୍ଷ ଏକସ୍ତରୀ ହଜାର । ଏମାନେ ମୁଖ୍ୟତଃ ମୟୂରଭଂଜ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲର ନୀଳଗିରି ଅଞ୍ଚଳରେ ବାସକରନ୍ତି । ତିନୋଟି ଜିଲ୍ଲାରେ ଏହି ସଂପ୍ରଦାୟ ବାସକରୁଥିଲେ ହେଁ ମୟୂରଭଂଜ ଓ କେନ୍ଦୁଝର ଜିଲ୍ଲାରେ ବହୁଳ ପରିମାଣରେ ବସତିସ୍ଥାପନ କରିରହିଛନ୍ତି । ଭୌଗଳିକ ଅବସ୍ଥିତି ଦୃଷ୍ଟିରୁ ମୟୂରଭଂଜ ଓ କେନ୍ଦୁଝରର ରାଜନୈତିକ ଓ ସାଂସ୍କୃତିକ ଗୁରୁତ୍ୱ ବିଶେଷ ରହିଛି । ନଦନଦୀ,ଉପତ୍ୟକା, ଗିରି,ପର୍ବତ ଓ ନିଘଞ୍ଚ ଅରଣ୍ୟାନୀ ଘେନି ମୟୂରଭଂଜ ଓ କେନ୍ଦୁଝର ଗଠିତ । ଏହି ବଣ ଜଙ୍ଗଲ ଘେରା ଅଞ୍ଚଳରେ ଛୋଟଛୋଟ ଗ୍ରାମସ୍ଥାପନ କରି ବାଥୁଡି ସଂପ୍ରଦାୟର ଲୋକମାନେ ବସତିସ୍ଥାପନ କରିଛନ୍ତି । ବାଥୁଡ଼ି ସଂପ୍ରଦାୟ ହିଁ ମୟରଭଂଜ ଓ କେନ୍ଦୁଝର ଜନସମାଜର ମୁଖ୍ୟ ଧାରା । ବାଥୁଡି ସଂପ୍ରଦାୟ ସଂପର୍କରେ ମୁଁ ଏଠାରେ ଅତି ସଂକ୍ଷେପରେ ମତ ଉପସ୍ଥାପନା କରୁଛି ।

## II. ବାଥୁଡି ସଂପ୍ରଦାୟର ଦୈନନ୍ଦିନ ଜୀବନ:

ଖରା ବର୍ଷା, ଶୀତ କାକର ଏସବୁ ବାଥୁଡି ସଂପ୍ରଦାୟ ଲୋକମାଙ୍କ ପକ୍ଷରେ ସମାନ । ବାଥୁଡି ସଂପ୍ରଦାୟର ଅଧିକାଂଶ ଲୋକ ଚାଷବାସ ଓ ମୂଲଲାଗି ତାଙ୍କର ଦୈନନ୍ଦିନ ଜୀବନ ଅତିବାହିତ କରିଥାନ୍ତି । ଏହି କର୍ମମୟ ଜୀବନରେ ଶ୍ରମକୁ ଲାଘବ କରିବା ପାଇଁ ବିଭିନ୍ନ ମନମତାଣିଆ ସଙ୍ଗୀତ ଗାନ କରିଥାନ୍ତି । ପ୍ରଭାତ ଠାରୁ ସଂନ୍ଧ୍ୟା ପର୍ଯ୍ୟନ୍ତ ଏମାନେ ଜୀବନ ସଂଗ୍ରାମରେ ବ୍ୟସ୍ତ ରହିଥାନ୍ତି । ବାଥୁଡି ସଂପ୍ରଦାୟର ଉଭୟ ପୁରୁଷ ଏବଂ ସ୍ତ୍ରୀ ଲେକମାନେ ବହୁ ପରିଶ୍ରମୀ ଅଟନ୍ତି । ସକାଳୁ ପଖାଳ ଖାଇ କର୍ମ କ୍ଷେତ୍ରକୁ ବାହାରିଥାନ୍ତି ଓ ସଂନ୍ଧ୍ୟା ସମୟରେ ଘରକୁ ଫେରିଥାନ୍ତି । ଏଭଳି ଭାବେ ତାଙ୍କ ଦିନ ବିତି ଯାଏ । ମାତ୍ର ସମାଜର ପରିବର୍ତ୍ତନ ସହ ତାଳ ଦେଇ ବାଥୁଡି ସଂପ୍ରଦାୟର ଲୋକମାନେ କେବଳ କୃଷି, କାମଧନ୍ଦା ଉପରେ ନିର୍ଭର ନକରି ବିଭିନ୍ନ ପ୍ରକାର ସରକାରୀ, ବେସରକାରୀ କର୍ମଉପରେ ମନୋନିବେଶ କଲେଣି । ବହୁ ସରକାରୀ, ବେସରକାରୀ ସଂସ୍ଥାରେ ଉଚ୍ଚ ପଦସ୍ଥ ଅଧିକାରୀ ଭାବରେ ଅବସ୍ଥାପିତ ମଧ୍ୟ ହୋଇଛନ୍ତି ।

## III. ବାଥୁଡି ସଂପ୍ରଦାୟର ପାରିବାରିକ ଓ ସାମାଜିକ ଜୀବନ:

ପ୍ରତ୍ୟେକ ଜାତି ବା ସଂପ୍ରଦାୟ ନିଜର ସ୍ଥିତି ଓ ପ୍ରଗତି ଅବ୍ୟାହତ ରଖିବା ପାଇଁ କେତେକ ସମାଜିକ ତଥା ସାଂସ୍କୃତିକ ମାନଦଣ୍ଡ ନିର୍ଦ୍ଧାରଣ କରିଥାଏ । ସେହି ମାନଦଣ୍ଡ ଅନୁସାରେ ବିଭିନ୍ନ ନୀତି ନିୟମ ପ୍ରଚଳିତ ହୋଇଥାଏ । ସେହି ନୀତି ନିୟମଗୁଡିକ ସେ ଜାତି ବା ସମାଜ ପ୍ରତି ଯେପରି କଲ୍ୟାଣକର, ଉକ୍ତ ଜାତି ବା ସମାଜରେ ବାସକରୁଥିବା ପ୍ରତ୍ୟେକ ବ୍ୟକ୍ତି ପ୍ରତି ସେହିପରି ଉପାଦେୟ ଓ ଶୁଭଙ୍କର । ଯେଉଁ ବ୍ୟକ୍ତି ଏହି ସାମାଜିକ ନୀତି ନିୟମ ଓ ଶୃଙ୍ଖଳା ଅନୁସାରେ ଚଳେ ସେ ଜଣେ ସମାଜିକ ଓ ଆଦର୍ଶ ବ୍ୟକ୍ତି ରୂପେ ପରିଗଣିତ ହୋଇଥାଏ । ମାତ୍ର ଯେଉଁ ବ୍ୟକ୍ତି ନିୟମ ନମାନି ସମାଜରେ ବିଭ୍ରାଟ ସୃଷ୍ଟି କରେ ସେ ଜଣେ ଅସାମାଜିକ ଓ ଅପରାଧ ପ୍ରବଣ ବ୍ୟକ୍ତି ରୂପେ ପରିଚିତ ହୁଏ । ଏଥିପାଇଁ ସେ ସମାଜରେ ନିନ୍ଦିତ ଓ ଦଣ୍ଡିତ ହୋଇଥାଏ । ବାଥୁଡି ସଂପ୍ରଦାୟର ଲୋକମାନଙ୍କର ସାମାଜିକ ଜୀବନରେ ମଧ୍ୟ ଏହା ପ୍ରତିଫଳିତ ହୋଇଥାଏ ।

## IV. ବାଥୁଡି ସଂପ୍ରଦାୟର ବଂଶ ଓ ଗୋତ୍ର ପରଂପରା :

ସଂରଚନାତ୍ମକ ଦୃଷ୍ଟିରୁ ବାଥୁଡି ସମାଜକୁ ସାଧାରଣତଃ କେତେ ଗୁଡିଏ ଗୋତ୍ର ଓ ବଂଶରେ ବିଭକ୍ତ କରାଯାଇଛି । ଗୋତ୍ର ହେଉଛି ବଂଶୋଦ୍ଭବ ରକ୍ତ ସଂପର୍କୀୟ ଜ୍ଞାତିମାନଙ୍କର ସମୂହ ବା ଗୋଷ୍ଠୀ । ବାଥୁଡି ସଂପ୍ରଦାୟରେ ଭିନ୍ନ ଭିନ୍ନ ବଂଶ, ଭିନ୍ନ ଭିନ୍ନ ଗୋତ୍ର ରହିଛି, କିନ୍ତୁ ଗୋତ୍ର ଗୁଡିକ କେତେକ ବଂଶରେ ପ୍ରାୟ ସମାନ । ସମଗୋତ୍ର ଥିଲେ ବାଥୁଡି ସଂପ୍ରଦାୟରେ ବିବାହ ହୁଏ ନାହିଁ । ବିବାହ ସମୟରେ ବାଥୁଡି ସଂପ୍ରଦାୟ ଲୋକମାନେ ଭିନ୍ନ ଭିନ୍ନ ଗୋତ୍ରରେ ବିବାହ କରିଥାନ୍ତି । ବିବାହ ସଂପନ୍ନ ହୋଇ ସାରିଲା ପରେ ଝିଅ ସ୍ୱାମୀପକ୍ଷର ଗୋତ୍ର ଗ୍ରହଣ କରେ । ବାଥୁଡି ସଂପ୍ରଦାୟର କେତେ ଗୁଡିଏ ବଂଶ ଓ ଗୋତ୍ରର ପରିଚିତି ମୁଁ ଏଠାରେ କରାଇ ଦେଉଛି । (ଯାହା ମୋ ଜ୍ଞାତସାରରେ)

| ବଂଶ | ଗୋତ୍ର |
|---|---|
| ଶଙ୍ଖିଆଳ | ପାଣିପୋକ |
| ପଧୁରିଆ | ହସ୍ତୀ, ପରାଶର |
| ଖଣ୍ଡେଇ | ସାଲୁକ,କୁଶ,ନାଗେଶ୍ୱର |
| ମଡେଇ | ଗଣେଷ, ନାଗେଶ୍ୱର |
| ପରିହାଳ | ଧାନଫୁଲ |
| ନାଇକ | ନାଗେଶ୍ୱର |
| ଗାଆଣ | ପାଣିପୋକ |
| ରଣଶିଆ | ସାଲୁକ |
| କୁଅଁର | କୁଶ |
| ବିଶ୍ୱାଳ | କୁଶ |
| ପାତ୍ର | ପାର୍ବିଆଳ,ପାଣିପୋକ |
| ଜାମୁଡିଆ | ସାଲୁକ |
| କୁମ୍ଭାରିଆ | ଧାନପୁଲ |
| ଗିରି | ଧାନଫୁଲ |
| ଝରିଆଳ | ନେତ |
| ମାଟିଆଣ | ନାଗେଶ୍ୱର |

ବାଥୁଡି ସଂପ୍ରଦାୟର କେତେକ ମତ ଦିଅନ୍ତି ଯେ , ବାସୁଳି ବା ବସୁମାତାଙ୍କର ବାର ପୁତ୍ର ଥିଲେ, ସେହି ପୁତ୍ରଙ୍କ ନାମ ଅନୁସାରେ ବାରଟି ବଂଶ ରହିଥିଲା । ପରବର୍ତ୍ତି ସମୟରେ ବଂଶ ବୃଦ୍ଧି ହେବାରୁ ବାଥୁଡି ବାର ଭାଇ ପୁଣି ୫୨ ବଂଶରେ ବିଭକ୍ତ ହେଲେ । ବାଥୁଡି ସଂପ୍ରଦାୟର ଲୋକମାନେ ଆରାଧ୍ୟ ଦେବତା ବଡାମକୁ ପୂଜା ଆରଧନା କରନ୍ତି । ବିଶ୍ୱାସ କରାଯାଏ କାଳକ୍ରମେ ସେମାନେ ମହାବୀର, ବାରଖଣ୍ଡା ବାଉନାବୀର, ବାସୁଳି, ବାଉଳାଶୁଣି, ବଡ଼ପାଟ, ବନଦୁର୍ଗା ଆଦି ଦେବାଦେବୀଙ୍କ ସ୍ଥାପନ ସହିତ ଧୂପଦୀପ, ନୈବେଦ୍ୟ ଦେଇ ପୂଜା କଲେ । ଯିଏ ଯେଉଁ ଦେବାଦେବୀଙ୍କ ପୂଜାଅର୍ଚନା କଲେ, ଦେବା ଦେବୀଙ୍କ ନାମ ଅନୁସାରେ ସେମାନଙ୍କ ବଂଶ ପରିଚିତ ହେଲା ।

| | |
|---|---|
| ଦଳେଇ | ଦେଉଳର ପୂଜକ |
| ଚିକିଣିଆ | ଦେଉଳର ଝୋଟିଚିତା ଅଂକନକାରୀ |
| ମାଟିଆଣ ଠାକୁରଙ୍କର ମୁର୍ତ୍ତିକାର | |
| ପାଣିଆଳ ଠାକୁରଙ୍କ ପାଇଁ ଯେ ପାଣିଯୋଗାଳି | |
| ଅଙ୍ଗାରୁଆ | ଜଳନ୍ତା ଅଙ୍ଗାର ସହିତ ଝୁଣାଧୂପ ଦେଉଥିବା ବ୍ୟକ୍ତି |
| ଖଟୁଆ | ଦେବାଦେବୀଙ୍କ ଖଟୁଲୀ ମାର୍ଜନାକାରୀ |
| କୁଶୁମାଳିଆ | ଦିଅଁଙ୍କଠାରେ କୁଶୁମାଲ୍ୟ ଅର୍ପଣକାରୀ |
| ପାଟୋଳିଆ | ଦିଅଁଙ୍କ ଫୁଲଯୋଗାଳୀ |
| ମହାପାତ୍ର ଭୁଜପତ୍ର ପରିଷ୍କାରକ | |
| ମାଣିକ୍ୟ | ଦିଅଁଙ୍କର ମାଣିକ ଅଳଂକାର ସେବକ |
| ମାଣିକ | ମାଣିକ ଦୀପରେ ଅଗ୍ନି ସଂଯୋଗକାରୀ |
| କୁଅଁର | କୁମାର ପୂର୍ଣିମାରେ ଦେବପୂଜକ |
| କଟୁଆଳ | ଦଳରେ ଅଧିକ କ୍ଷମତା ଭୋଗୀ |
| କପୁଣ୍ଡିଆ | ପବିତ୍ର ଜଳରେ ଦେଉଳ ଲିପାପଛା କରୁଥିବା ସେବକ |
| କାର୍ଜି | ସମସ୍ତ କାର୍ଯ୍ୟକ୍ରମରେ ଯେ ଆଗ୍ରହୀ |
| ଖଣ୍ଡେଇ | ଦେବତାଙ୍କ ପାଖରେ ଥିବା ଖଣ୍ଡାକୁ ସପ୍ତାହରେ ଥରେ ପରିଷ୍କାର କରି ରଖୁଥିବା ସେବକ |
| ଖଳିକାର | ଦେଉଳ ପୂଜାସାମଗ୍ରୀ ରଖିବାପାଇଁ ପତ୍ରରେ ଖଳି ସିଲେଇ ସେବକ |
| ପଧୁରିଆ ମନ୍ତ୍ରପାଠ କରି ଶୁଭକର୍ମ ନିର୍ବାହକାରୀ | |
| ସେନାପତିଦଳପତି | |
| ଦଳବେହେରା | ଦଣ୍ଡପାଟରେ ଯେ କନିଷ୍ଠ |
| ଦଣ୍ଡପାଟ | ଦେବତାଙ୍କ ମସ୍ତକରେ ସୁନ୍ଦର ଭାବରେ ପାଟବସ୍ତ୍ର ବନ୍ଧାଳୀ |

### V. ବିବାହ ବ୍ୟବସ୍ଥା :

ବିବାହ ଏକ ସାମାଜିକ ପ୍ରଥା । ବିବାହ ମଣିଷ ଜୀବନର ଏକ ଆବଶ୍ୟକୀୟ ଘଟଣା ହୋଇଥିଲେ ମଧ୍ୟ ବିଭିନ୍ନ ସଂପ୍ରଦାୟରେ ଭିନ୍ନ ଭିନ୍ନ ରୀତି ନୀତି ଅନୁଯାୟୀ ଅନୁଷ୍ଠିତ ହୋଇଥାଏ । ବାଥୁଡି ସଂପ୍ରଦାୟରେ ପୁଅ ଝିଅ ବିବାହ ଯୋଗ୍ୟ ହେଲେ ବିବାହ କରାଇ ଦିଆ ଯାଏ । ବାଥୁଡି ସଂପ୍ରଦାୟର ବିବାହର ପ୍ରଥମ ,ସୋପାନ ହେଉଛି କନିଆଁ ଦେଖା ବା ଝିଅ ଦେଖା । ପୁଅ ନିଜର ସାଙ୍ଗସାଥିଙ୍କୁ ଧରି ଅନ୍ୟ ଗ୍ରାମକୁ ଝିଅ ଦେଖିବାକୁ ଯାଏ। ପୁଅର ଝିଅ ପସନ୍ଦ ଯୋଗ୍ୟ ହେଲେ, ପୁଅର ପିତା ଡାଣ୍ଡିଆ ( ମଧ୍ୟସ୍ଥି) ଧରି ଝିଅ ଘରକୁ ଯାଆନ୍ତି । ଉଭୟ ପକ୍ଷ ବିବାହରେ ସହମତି ପ୍ରଦାନ କଲେ କଥା ଆଗକୁ ବଢି ଥାଏ । ବିବାହ ସ୍ଥିର ହେବା ପରେ ପୁଅ ପକ୍ଷ ଲୋକ ଝିଅ ଘରକୁ ଯାଇଥାନ୍ତି,ସେହି ଦିନ ବିବାହ ପାଇଁ ନିର୍ଦ୍ଧିଷ୍ଟ ଦିନ ଧାର୍ଯ୍ୟ କରାଯାଇଥାଏ ଏହାକୁ ବାଥୁଡି ସଂପ୍ରଦାୟର ଗୁଆଭଙ୍ଗା ବୋଲି କୁହାଯାଏ। ଏହି ଦିନ ବର ପକ୍ଷ ନିଜର ସାମର୍ଥ ଅନୁସାରେ ଝିଅ ଘରକୁ କେତେଟି ଶାଢୀ,କେତୋଟି ଛେଳି ବୋଦା ଦେବେ ତାହା ସ୍ଥିର ହୋଇଥାଏ । ବିବାହ ସ୍ଥିର ହେବାପରେ ପୁଅ ପକ୍ଷ ନିଜର ସାମର୍ଥ ଅନୁସାରେ ମୁଦି କିମ୍ବା ହାର ଝିଅକୁ ଦେଇଥାନ୍ତି ଏହାକୁ ନିର୍ବନ୍ଧ ବା ପିନ୍ଧାଣି (ବାଥୁଡି ସଂପ୍ରଦାୟ) କୁହାଯାଏ। ବିବାହ ପୂବଦିନ ଗୁଆଭଙ୍ଗାରେ ବର ପକ୍ଷଯାହା ମଙ୍ଗିଥାନ୍ତି ତାହା ଧରି କନ୍ୟା ଘରେ ଉପସ୍ଥିତ ହୁଅନ୍ତି । ତାପରେ କନିଆ ମଗାହୁଏ। ରାତ୍ରିରେ ବର ଆସିବା ପୂର୍ବରୁ ସଂଧ୍ୟା ସମୟରେ କନିଆ ମାଗି ଆସିଥିବା ଯୁବକମାନେ ନିକଟସ୍ଥଜଙ୍ଗଲରୁ ଚାରିଗୋଟି ଜାମୁଡାଳ ଆଣି ବେଦି ବାନ୍ଧିଥାନ୍ତି । ତତପରେ ବାଥୁଡି ସଂପ୍ରଦାୟର ରୀତିନୀତି ଅନୁସାରେ ଗନ୍ଧା ଦିଆଯାଏ । କନ୍ୟାର ସଂପର୍କୟମାନେ ଗନ୍ଧା ଦେବା ସୟୟରେ ଝିଅମାନେ ଗୀତ ଗାଇଥାନ୍ତି। କନ୍ୟାର ମାଆ ଗନ୍ଧା ଦେଲା ବେଳେ ଝିଅମାନେ ଗାଇଥାନ୍ତି।

'ନାଠି ତ ନାଠି ବୋଲଇଁ ବନଶୀ ନାଠି ନାଠି
କନିଆର ମାଆ ଗନ୍ଧାଦେଉଛି ପତର ଚାଟି ଚାଟି
ଯା ରସ ଯାଆ ଚାଲି ଯାଆରେ'।

ଗନ୍ଧାଦେବା ସମାପ୍ତ ହେଲାପରେ କନ୍ୟାକୁ ଗାଧୋଇ ଦିଆ ଯାଏ ଏହାକୁ କୋଇଲିବୁଡ଼ କୁହାଯାଏ । ରାତ୍ରିରେ ବର ଆସିଲେ ବରକୁ ବନ୍ଦାପନା କରି ନିଆଯାଏ ଏବଂ ବୈଦିକ ରୀତି ଆନୁସାରେ ବିବାହ ଅନୁଷ୍ଠିତ ହୋଇଥାଏ।

### VI. ବେଶ ପୋଷାକ:

ବାଥୁଡି ସଂପ୍ରଦାୟର ଲୋକମାନେ ସାଧାରଣତଃ ସୂତା କପଡାରେ ତିଆରି ବସ୍ତ୍ର ବ୍ୟବହାର କରିଥାନ୍ତି । ପୁରୁଷମାନେ ଧୋତି ଓ କୁର୍ତ୍ତା ପିନ୍ଧୁଥିବାବେଳେ ନାରୀମାନେ ସୂତା ଶାଢୀ ବ୍ୟବହାର କରିଥାନ୍ତି । ଅନ୍ୟ ଆଦିବାସୀ ସଂପ୍ରଦାୟ ପରି ବାଥୁଡି ସଂପ୍ରଦାୟର କୌଣସି ସ୍ୱତନ୍ତ୍ର ପାରଂପାରିକ ବେଶପୋଷାକ ନାହିଁ । ଶିନିବାର ଦିନ ବଡାମ ପୂଜା ସମୟରେ ବାଥୁଡି ସଂପ୍ରଦାୟର ପୁରୁଷମାନେ ଧଳା ଧୋତି,ଧଳାଗଞ୍ଜି ଓ ନାରୀମାନେ ଧଳା ଶାଢୀ ବ୍ୟବହାର କରିଥାନ୍ତି । ଏତତ ବ୍ୟତିତ ନାରୀମାନେ ଅଳଂକାର ପ୍ରିୟ ହାତରେ କାଚର ଚୁଡି, ପ୍ଲାଷ୍ଟିକ ବଳା, ପିତ୍ତଳ ବଳା, ଓ ଶଙ୍ଖା ପରିଧାନ କରିଥାନ୍ତି । ନାକ ଓ କାନରେ ନାକଫୁଲ,କାନଫୁଲ, ଗଳାରେ ସୁନାରୁପାର ହାର, ମାଳି,ଗୋଡ଼ରେ ପାଉଁଜି, ହାତ ଆଙ୍ଗୁଠିରେ ମୁଦି ପିନ୍ଧିଥାନ୍ତି।

### VII. ପର୍ବପର୍ବାଣି :

ଓଡ଼ିଶାରେ ବାର ମାସରେ ତେର ପର୍ବ ପାଳନ କରାଯାଏ, ଠିକ୍ ସେହିପରି ବାଥୁଡି ସଂପ୍ରଦାୟର ଭାଇ ଭଉଣୀ ମାନେ ମଧ୍ୟ ବର୍ଷସାରା ବିଭିନ୍ନ ପ୍ରକାର ପର୍ବପର୍ବାଣି ପାଳନ କରିଥାନ୍ତି। ତନ୍ମଧ୍ୟରୁ ରଜ ,ମକର ଓ ଚୈତ୍ର ପର୍ବ ପ୍ରଧାନ । ଚଇତ ମାସର ଅଠର ଦିନରେ ଶିମିଳିପାଳ ଅଭୟାରଣ୍ୟର ଘଂଚ ଜଙ୍ଗଲ ମଧ୍ୟରେ ଅବସ୍ଥିତ ଥିବା ଅଠର ଦେଉଳରେ ପୂଜାପାଆନ୍ତି ଜାତିର ଆରାଧ ଦେବାଦେବୀ ବଡାମ ବଡାମଣୀ। ସେଠାରେ ପାଞ୍ଚଦିନ ଧରି ପୂଜା ପଦ୍ଧତି ଅନୁଷ୍ଠିତ ହୋଇଥାଏ । ରାତ୍ରି ସମୟରେ ବାଥୁଡି ଜାତିର ବୀର ବାଦ୍ୟ ଚାଙ୍ଗୁ ନୃତ୍ୟ ଅନୁଷ୍ଠିତ ହୋଇଥାଏ । ଚାଙ୍ଗୁ ଗୀତରେ ଭରି ରହିଥାଏ ଜୀବନର ମହକ । ବଡାମ ଠାକୁରଙ୍କ ରୂପ ବର୍ଣ୍ଣନା ମଧ୍ୟ ଚାଙ୍ଗୁଗୀତରେ ଦେଖିବାକୁ ମିଳିଥାଏ । ଯଥା-

ଶିରି ରାମ ଯେ, ଗୋବିନ୍ଦ ରାମ ରାମ
ଶୀତଳ ବଉଳ ମୂଳେ ଦଣ୍ଡେ ବିଶିରାମ
ଓଡ଼ିଶାରେ ଜଗନ୍ନାଥ ଝାଡଖଣ୍ଡେ ବଡାମ ।

ଚାଙ୍ଗୁଗୀତରେ ଯେ କେବଳ ବଡାମ ଠାକୁରଙ୍କ ମହିମା ବର୍ଣ୍ଣାନା ରହିଛି ତାହା ନୁହେଁ ଏଥିରେ ରହିଥାଏ, ପୌରାଣିକ ଆଖ୍ୟାନ, ସାମାଜିକ ଚଳଣି , ରୀତିନୀତି ଓ ପରଂପରାର ନିଖୁଣ ଚିତ୍ର । ବିଶିଷ୍ଟ ସମାଲୋଚକ ଓ କଥାକର ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ– "ଆଦିବାସୀ ସଂସ୍କୃତି ଯେ ଯଥେଷ୍ଟ ଉଚ୍ଚରେ, ତାହା ଖୁବ କମ ଲୋକ ବୁଝନ୍ତି । ଆଦିବାସୀ ସଂସ୍କୃତି ଓ ସମାଜ ଜୀବନରେ ଯେଉଁ ମୂଲ୍ୟବୋଧର ସୂଚନା ରହିଛି, ତାହା ଆମ୍ଭମାନଙ୍କ ତଥାକଥିତ ସୁସଭ୍ୟ ସମାଜର ମୂଲ୍ୟବୋଧଠାରୁ ଯେ ଉନ୍ନତତର, ସେଥିରେ ସନ୍ଦେହ ନାହିଁ । ଆଦିବାସୀ କନ୍ୟାର ପ୍ରାକୃତିକ ଉଲ୍ଲଙ୍ଗତା ଅବଗୁଣ୍ଠିତ ପ୍ରକୃତି ପରି ଯେପରି ରହସ୍ୟମୟ, ସେହିପରି ମଧ୍ୟ ବିକୃତିହୀନ ଓ ନିଷ୍ପାପ । ସୁତରାଂ ଆମ୍ଭମାନଙ୍କ ବର୍ବରତା ଆଦିବାସୀ ସମାଜର ଆଦିମାତା ଯେ ଅଧିକ ପବିତ୍ର, ଅଧିକ ରୋମାଣ୍ଟିକ ଏହା ନିଃସନ୍ଦେହ । ଆଦିବାସୀ ଜୀବନର ସୁଖଦୁଃଖ, ହସକାନ୍ଦ,ଆଶାଆଶଙ୍କା, ଲୁହ ଓ ସ୍ୱପ୍ନ ଏସବୁର ନିଚ୍ଛକ ପ୍ରତିଫଳନ ତାଙ୍କର ଗୀତ" ।

ବାଥୁଡି ସଂପ୍ରଦାୟର ପାଳନ କରାଯାଉଥିବା ବିଭିନ୍ନ ପର୍ବପର୍ବାଣି ମଧ୍ୟରୁ ରଜ ପର୍ବ ହେଉଛି ଅନ୍ୟତମ । ଏହି ପର୍ବରେ ବାସୁକୀ ବସୁମତାକୁ ପୂଜାଅର୍ଚ୍ଚନା କରାଯାଏ । ରଜ ପର୍ବ ସାଧାରଣତଃ ତିନିଦିନ ଧରି ପାଳନ କରାଯାଇଥାଏ । ବାଥୁଡି ସଂପ୍ରଦାୟର ରଜ ପର୍ବରେ ବୋଲାଯାଉଥିବା ରଜ ଦୋଳିଗୀତ ହେଉଛି ମୁଖ୍ୟ ଆକର୍ଷଣ । ଦୋଳି ଗୀତ ହେଉଛି ପ୍ରାକ୍ ଯୌବନର ଗୀତ । ତେଣୁ ଦୋଳି ଖେଳ ସମୟରେ ଢାଙ୍ଗୁଆ ଢାଙ୍ଗୁଳି ସାଙ୍ଗସାଥି, ପ୍ରେମିକ ପ୍ରେମିକାମାନଙ୍କୁ ଲକ୍ଷ୍ୟକରି ବିଭିନ୍ନ ପ୍ରକାର ଗୀତ ବୋଲିଥାନ୍ତି । ଢାଙ୍ଗୁଆ ଢାଙ୍ଗୁଳି ପ୍ରାଣର ଏକ ମିଶାମିଶିଭାବ ଏହି ଗୀତଗୁଡିକୁ ସରସ ଓ ରୁଚିପୂର୍ଣ୍ଣ କରିଥାଏ । ରଜ ଦୋଳିଗୀତ ଗୁଡିକ ବହୁ ରାଗରାଗିଣୀ ଯୁକ୍ତ । ସ୍ୱର ମଧୁର ଓ ଭାବ ସରସ । ରଜ ଦୋଳି ଗୀତରେ ଭରିରହିଛି ଜୀବନର ପ୍ରେମ ବିରହ,ହାସକାନ୍ଦ,ସୁଖଦୁଃଖ, ଅଭାବ ଅନଟନର ଚିତ୍ର ପ୍ରସ୍ଫୁଟିତ । ଦୋଳି ଗୀତର କେତୋଟି ପଂକ୍ତି ଉଦ୍ଧାର କରାଗଲା

**VIII. ଦେବାଦେବୀଙ୍କ ଚିତ୍ର :**

ବାଡ଼ରେ ରୋଇଲି ବେତ
ପ୍ରଥମେ ବନ୍ଦିଲି ଗ୍ରାମ ଦେବତୀଙ୍କୁ ଏ ଦଣ୍ଡବତ
ଅନୁକୂଳ ହେଲା ଏ ଗୀତ । (୧)
ଆହାରେ ସଙ୍ଗାତ ମିତ
ଓଡ଼ିଶାର ଠାକୁର ଜଗତର ନାଥ
ଜଗତର ନାଥ ହୋ ସଭି ଏଁ ଗାଆନ୍ତି ଗୀତ । (୨)

**IX. ବିରହଚିତ୍ର :**

ଗୋଡରେ ଲେଖିଲି ହଂସ
ମୋତେ ଛାଡି କାନ୍ତ ଯିବେ ବିଦେଶ
ଯିବେ ବିଦେଶ ହୋ
ସବୁ ହେବ ମୋର ବିଷ । (୧)
ଶୂନ୍ୟରେ ଉଡଇ ଶାରୀ
ଦୁଇଚାରି ଦିନେ ଆସିବି ଫେରି
ଆସିବି ଫେରି ହୋ
ରହିଥିବୁ ଦେହ ଧରି । (୨)

**X. ପ୍ରେମମୂଳକ :**

ବାଟର ଡେଙ୍ଗା କୁଲୁଚି
ନପାଇ ଭାଇ ତତେ ମରୁଛି
ତତେ ମରୁଛି ହୋ
ନ ଯାଇ ପ୍ରାଣ ରହିଛି । (୧)
ବେଲ ଗଡେ ରାଇ ଗଡେ
ତତେ ଯେତେବେଳେ ମନରେ ପଡେ
ମନରେ ପଡେ ହୋ
ଦୁଇ ଆଖି ଲୁହ ଗଡେ । (୨)

**XI. ଦାରିଦ୍ର ଚିତ୍ର:**

ଛାଇନି ପତର ଛତା
ରହ କହିଦେବି ଦୁଃଖର କଥା
ଦୁଃଖର କଥା ହୋ
ଶୁଣିନେ ଖାଇବ ମଥା । (୧)
ବାଳିରି ବାଳିଆ ଗେଵ
ଦିନୁ ଦିନୁ ଭାଇରେ ହେନୁ ଗରିବ
ହେନୁ ଗରିବ ହୋ
ଆଉ କି ରଖିବ ଭାବ । (୨)

ଉପରୋକ୍ତ ଦୋଳି ଗୀତଗୁଡିକରେ ଢାଙ୍ଗୁଆ ଢାଙ୍ଗୁଳି ପ୍ରାଣର ଆବେଗ ପ୍ରକାଶ ପାଇଛି । ବାସ୍ତବିକ ବାଥୁଡି ସଂପ୍ରଦାୟର ରଜଦୋଳି ଗୀତର ସ୍ଥାନ ଗୁରୁତ୍ୱପୂର୍ଣ୍ଣ ଅଟେ।

ଯୁଗ ବଦଳୁଛି, ଚଳଣି ବଦଳୁଛି, ଶାସନ ବି ବଦଳୁଛି । ବାଥୁଡିସଂପ୍ରଦାୟର ସ୍ଥିତି ନ ବଦଳିବ କାହିଁକି? ଆଶାଦୂରାଶା ଦେଇ ଗତି କରୁଥିବା ବାଥୁଡି ସଂପ୍ରଦାୟ ଏବେ ଜାଗିଉଠିଲେଣି । ବାଥୁଡି ଜାତିର ଲୋକମାନେ ବର୍ତ୍ତମାନ ସହ ତାଳ ଦେଇ ବଞ୍ଚିବାକୁ ହେଲେ ଶିକ୍ଷା,ସ୍ୱାସ୍ଥ୍ୟ, ସଚେତନତା ଓ ଆତ୍ମନିର୍ଭରଶୀଳତା ଉପରେ ବିଶେଷ ଧ୍ୟାନ ଦେବାକୁ ପଡିବ । ନିଜ ଜାତିର ବିକାଶ ପାଇଁ ଆମେ ସମସ୍ତେ ଏକ ହୋଇ ପାରିଲେ ଏ ଜାତିର ବିକାଶ ସୁନିଶ୍ଚିତ ହୋଇ ପାରିବ ।

**ସହାୟକ ଗ୍ରନ୍ଥସୂଚୀ**


[1]. ଓଡ଼ିଶା ସାହିତ୍ୟ ଏକାଡେମୀ (ସଂ) , ଓଡ଼ିଆ ସାହିତ୍ୟ ଓ ଆଦିବାସୀ ସଂସ୍କୃତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ଦ୍ୱିତୀୟ ସଂସ୍କରଣ ୨୦୦୪

[2]. ଚିତ୍ରସେନ ପ୍ରସାୟତ (ସଂ), ଆଦିବାସୀ ମୌଖିକ ସାହିତ୍ୟ ପରଂପରା, ସାହିତ୍ୟ ଅକାଦେମି, ଦ୍ୱିତୀୟ ସଂସ୍କରଣ ୨୦୧୬

[3]. ରବିନ୍ଦ୍ର ମୋହନ ସେନାପତି , ଓଡ଼ିଶାର ଆଦିବାସୀ, ବିଦ୍ୟାବାରତୀ,କଟକ ପ୍ରଥମ ସଂସ୍କରଣ, ୨୦୦୬

[4]. ନୃସିଂହପ୍ରସାଦ ମିଶ୍ର,ଶୁକଦେବ ସାହୁ, ଆଦିବାସୀ ସମାଜ ଓ ସଂସ୍କୃତି, ମନୋରମା ପବ୍ଲିଶର୍ସ, କଟକ, ଦ୍ୱିତୀୟ, ସଂସ୍କରଣ, ୨୦୧୬

[5]. ରାଜକିଶୋର ନାୟକ,ଶରତ ଚନ୍ଦ୍ର ନାଏକ, ବାଥୁଡି ଜାତିର ଅଜ୍ଞାତ ଅଧ୍ୟାୟ, ପ୍ରକାଶକ, ବାଥୁଡି ସାଂସ୍କୃତିକ ସମାଜ, କେନ୍ଦୁଝ